# ଆଦି ପୁସ୍ତକ

## ସୃଷ୍ଟି ବିବରଣ

୧ ଈଶ୍ୱର ଆକାଶ ମଣ୍ଡଳ ଓ ପୃଥିବୀ ସୃଷ୍ଟି
କରିବା ସମୟରେ ପୃଥିବୀ ଆକାର ବିହୀନ
ଓ ଶୂନ୍ୟ ଥିଲା । ୨ ତାକୁ ସମ୍ପୂର୍ଣ୍ଣ ରୂପେ ଆବୃତ
କରି ରହିଥିବା ଜଳରାଶି ଅନ୍ଧକାରାଚ୍ଛନ୍ନ ଥିଲା ଓ ଜଳ
ଉପରେ ଈଶ୍ୱରଙ୍କ ଆତ୍ମା ବିଚରଣ କରୁଥିଲେ ।
୩ ଈଶ୍ୱର ଆଦେଶ ଦେଲେ, "ଆଲୋକ ହେଉ" ।
ସଙ୍ଗେ ସଙ୍ଗେ ଆଲୋକ ପ୍ରକାଶ ପାଇଲା । ୪ ଈଶ୍ୱର
ଦେଖିଲେ ଯେ, ତାହା ଉତ୍ତମ ଓ ସେ ଆଲୋକକୁ
ଅନ୍ଧକାରରୁ ପୃଥକ୍ କଲେ; ୫ ଆଲୋକକୁ ଦିବସ ଓ
ଅନ୍ଧକାରକୁ ରାତ୍ରି ନାମ ଦେଲେ । ରାତ୍ରିର ଅବସାନ
ପରେ ପ୍ରାତଃକାଳ ହୋଇ ପ୍ରଥମ ଦିନ ଶେଷ ହେଲା ।

୬-୭ ତା'ପରେ ଈଶ୍ୱର ଆଦେଶ ଦେଲେ, "ଜଳରାଶି
ଦୁଇ ଭାଗରେ ବିଭକ୍ତ ହେଉ ଏବଂ ତାହାର ମଧ୍ୟ
ଭାଗରେ ଏକ ଶୂନ୍ୟ ସ୍ଥାନ ସୃଷ୍ଟି ହେଉ ।" ଈଶ୍ୱର
ସେହିଭଳି ଏକ ଶୂନ୍ୟ ସ୍ଥାନ ସୃଷ୍ଟି କରିବାରୁ ଜଳର
କେତେକ ଅଂଶ ତା'ର ଉପରି ଭାଗରେ ରହି ନିମ୍ନସ୍ଥ
ଜଳରାଶିଠାରୁ ଅଲଗା ହେଲା । ୮ ସେହି ଶୂନ୍ୟ ସ୍ଥାନକୁ
ଈଶ୍ୱର 'ଆକାଶ ମଣ୍ଡଳ' ନାମ ଦେଲେ । ସନ୍ଧ୍ୟା ଓ
ରାତ୍ରି ପରେ ପ୍ରତ୍ୟୁଷ ହୋଇ ଦ୍ୱିତୀୟ ଦିନ ସମାପ୍ତ
ହେଲା ।

୯ ତା'ପରେ ଈଶ୍ୱର ଆଦେଶ ଦେଲେ, "ଆକାଶ
ତଳେ ଥିବା ଜଳସବୁ ସଂଗୃହୀତ ହେଉ ଓ ସ୍ଥଳଭାଗ
ଦେଖାଯାଉ ।" ସେହିପରି ହେଲା । ୧୦ ଈଶ୍ୱର ସ୍ଥଳ-
ଭାଗକୁ 'ପୃଥିବୀ' ଓ ସଂଗୃହୀତ ହୋଇଥିବା ଜଳରାଶିକୁ
'ସମୁଦ୍ର' ନାମ ଦେଲେ । ଈଶ୍ୱର ଦେଖିଲେ ଯେ,
ତାହା ଉତ୍ତମ । ୧୧ ତା'ପରେ ଈଶ୍ୱର ପୁଣି ଥରେ
ଆଜ୍ଞା ଦେଇ କହିଲେ, "ପୃଥିବୀରେ ଫଳ ଓ ଶସ୍ୟ
ଧାରଣ କରି ପାରୁଥିବା ସବୁ ପ୍ରକାର ବୃକ୍ଷଲତା ଓ
ତୃଣଶାକ ପ୍ରଭୃତି ଉଦ୍ଭିଦ ଉତ୍ପନ୍ନ ହେଉ ।"
୧୨ ତାହାଙ୍କ ଆଜ୍ଞା ଅନୁଯାୟୀ ପୃଥିବୀରେ ସବୁ ପ୍ରକାର
ଉଦ୍ଭିଦ ଜାତ ହେଲା । ଏହା ମଧ୍ୟ ଈଶ୍ୱରଙ୍କ ଦୃଷ୍ଟିରେ
ଉତ୍ତମ ବିବେଚିତ ହେଲା । ୧୩ ପୁନର୍ବାର ସନ୍ଧ୍ୟା ଓ
ରାତ୍ରିର ଅବସାନ ପରେ ପ୍ରାତଃକାଳ ହୋଇ ତୃତୀୟ
ଦିନ ଗତ ହେଲା ।

୧୪ ଈଶ୍ୱର ଆଉ ଏକ ଆଦେଶ ଦେଲେ, "ଦିବସକୁ
ରାତ୍ରିରୁ ପୃଥକ୍ କରିବା ପାଇଁ ଆକାଶରେ ଜ୍ୟୋତିଷ୍କ-
ମାନେ ଆବିର୍ଭୂତ ହୁଅନ୍ତୁ । ସେମାନଙ୍କ ଦ୍ୱାରା ଦିବସ,
ବର୍ଷ ଓ ଋତୁ ନିର୍ଣ୍ଣୀତ ହେବ । ୧୫ ସେମାନେ
ଆକାଶରେ ଦୀପ୍ତିମାନ ହୋଇ ପୃଥିବୀକୁ ଆଲୋକ
ପ୍ରଦାନ କରିବେ ।" ଈଶ୍ୱର କହିବା ଅନୁଯାୟୀ
ହେଲା । ୧୬ ଈଶ୍ୱର ଦୁଇଟି ବୃହତ୍ ଜ୍ୟୋତିଷ୍କ ସୃଷ୍ଟି
କଲେ । ସେମାନଙ୍କ ମଧ୍ୟରୁ ବୃହତ୍ତର ଜ୍ୟୋତିଷ୍କ
ସୂର୍ଯ୍ୟ, ଦିବସ ଉପରେ ଓ କ୍ଷୁଦ୍ରତର ଚନ୍ଦ୍ର, ରାତ୍ରି
ଉପରେ କର୍ତ୍ତୃତ୍ୱ କଲେ । ଈଶ୍ୱର ତାରାମାନଙ୍କୁ ମଧ୍ୟ
ସୃଷ୍ଟି କଲେ । ୧୭ ଏହିପରି ଭାବରେ ପୃଥିବୀକୁ
ଆଲୋକିତ କରିବା ପାଇଁ, ୧୮ ଦିବସ ଓ ରାତ୍ରି
ଉପରେ କର୍ତ୍ତୃତ୍ୱ କରିବାକୁ ଓ ଆଲୋକକୁ ଅନ୍ଧକାରରୁ
ପୃଥକ୍ କରିବା ନିମନ୍ତେ ଈଶ୍ୱର ଆକାଶରେ ଜ୍ୟୋତିଷ୍କ-
ମାନଙ୍କୁ ସ୍ଥାପନ କଲେ । ଏହି ସମସ୍ତ ଈଶ୍ୱରଙ୍କ
ଦୃଷ୍ଟିରେ ଉତ୍ତମ ଦେଖାଗଲା । ୧୯ ଆଉ ଏକ ଦିନର
ଅବସାନ ପରେ ପ୍ରାତଃକାଳ ହୋଇ ଚତୁର୍ଥ ଦିନ
ସମାପ୍ତ ହେଲା ।

୨୦ ତା'ପରେ ଈଶ୍ୱର ଆଜ୍ଞା ଦେଲେ, "ନାନା
ପ୍ରକାର ଜୀବନ୍ତ ପ୍ରାଣୀରେ ଜଳରାଶି ପରିପୂର୍ଣ୍ଣ ହେଉ
ଓ ପୃଥିବୀ ଉପରେ ଆକାଶରେ ପକ୍ଷୀମାନେ ଉଡ଼ନ୍ତୁ ।"
୨୧ ଏହା କହି ଈଶ୍ୱର ବୃହତ୍କାୟ ଜଳଜନ୍ତୁ ତଥା
ସବୁ ପ୍ରକାର ଜଳଚର ଜୀବ ଓ ଅନେକ ପ୍ରକାର
ପକ୍ଷୀ ସୃଷ୍ଟି କଲେ । ଏହି ସମସ୍ତ ଈଶ୍ୱରଙ୍କ ଦୃଷ୍ଟିରେ

---

୧:୩- ୨ୟ କରିନ୍ଥୀ ୪:୬ । ୧:୬-୮- ୨ୟ ପିତର ୩:୫

ଉତ୍ତମ୍ ଦେଖାଗଲା । ୨୨ ସମସ୍ତଙ୍କୁ ଆଶୀର୍ବାଦ କରି
ସେ କହିଲେ, ଜଳଚର ଜୀବମାନେ ବଂଶବୃଦ୍ଧି କରି
ସମୁଦ୍ରକୁ ପୂର୍ଣ୍ଣ କରନ୍ତୁ ଓ ପକ୍ଷୀମାନେ ବହୁସଂଖ୍ୟକ
ହୁଅନ୍ତୁ । ୨୩ ଆଉ ଗୋଟିଏ ସନ୍ଧ୍ୟା ଓ ରାତ୍ରି ପରେ
ପ୍ରାତଃକାଳ ହୋଇ ପଞ୍ଚମ ଦିନ ଶେଷ ହେଲା ।

୨୪ ତା'ପରେ ଈଶ୍ୱର ଆଜ୍ଞା ଦେଲେ ପୃଥିବୀରେ
ବୃହତ୍ ଏବଂ କ୍ଷୁଦ୍ରକାୟ ସବୁ ପ୍ରକାର ବନ୍ୟ ଓ ଗୃହ-
ପାଳିତ ପଶୁ ଓ ସରୀସୃପ ଉତ୍ପନ୍ନ ହୁଅନ୍ତୁ । ୨୫ ଈଶ୍ୱର
ଏ ସମସ୍ତ ସୃଷ୍ଟି କରି ସବୁ ଉତ୍ତମ ଦେଖିଲେ ।

୨୬ ତା'ପରେ ଈଶ୍ୱର କହିଲେ, "ଆମେ ଆପଣା
ସ୍ୱରୂପ ଓ ସାଦୃଶ୍ୟରେ ମନୁଷ୍ୟ ସୃଷ୍ଟି କରିବା ।
ସେମାନେ ମତ୍ସ୍ୟ, ପକ୍ଷୀ ତଥା ସମସ୍ତ ବୃହତ୍ ଓ
କ୍ଷୁଦ୍ରକାୟ ଗୃହପାଳିତ ଏବଂ ବନ୍ୟଜନ୍ତୁମାନଙ୍କ ଉପରେ
କର୍ତ୍ତୃତ୍ୱ କରିବେ । ୨୭ ଏହା କହି ଈଶ୍ୱର ତାହାଙ୍କ ନିଜ
ସାଦୃଶ୍ୟରେ ମନୁଷ୍ୟକୁ ସୃଷ୍ଟି କଲେ । ସେ ତାକୁ
ପୁରୁଷ ଓ ସ୍ତ୍ରୀ କରି ସୃଷ୍ଟି କଲେ ୨୮ ଓ ସେମାନଙ୍କୁ
ଆଶୀର୍ବାଦ କରି କହିଲେ, "ତୁମ୍ଭମାନଙ୍କର ଅନେକ
ସନ୍ତାନ ହୁଅନ୍ତୁ ଏବଂ ସେମାନଙ୍କ ବଂଶଧରମାନେ
ସର୍ବତ୍ର ବ୍ୟାପିଯାଇ ପୃଥିବୀ ଉପରେ କର୍ତ୍ତୃତ୍ୱ କରନ୍ତୁ ।
ତୁମ ଅଧୀନରେ ଆମେ ସମସ୍ତ ମତ୍ସ୍ୟ, ପକ୍ଷୀ ଓ
ପଶୁମାନଙ୍କୁ ରଖୁଛୁ । ୨୯ ତୁମ୍ଭମାନଙ୍କର ଖାଦ୍ୟ ପାଇଁ
ଆମେ ସବୁ ପ୍ରକାର ଶସ୍ୟ ଓ ଫଳ ଯୋଗାଇ
ଦେଉଛୁ । ୩୦ କିନ୍ତୁ ବନ୍ୟପଶୁ , ପକ୍ଷୀ ଓ ସରୀସୃପ-
ମାନଙ୍କ ପାଇଁ ଘାସ ଓ ସବୁଜ ଶାକର ବ୍ୟବସ୍ଥା
କରିଛୁ ।" ଈଶ୍ୱର କହିବା ଅନୁଯାୟୀ ତାହାସବୁ
ହେଲା । ୩୧ ସୃଷ୍ଟି କରିଥିବା ସମସ୍ତ ବିଷୟ ଅତି
ଉତ୍ତମ ଦେଖି ଈଶ୍ୱର ସନ୍ତୁଷ୍ଟ ହେଲେ । ଆଉ ଗୋଟିଏ
ସନ୍ଧ୍ୟା ଓ ରାତ୍ରି ପରେ ପ୍ରତ୍ୟୁଷ ହୋଇ ଷଷ୍ଠ ଦିନ
ସମାପ୍ତ ହେଲା ।

୨ ଏହିପରି ଭାବରେ ସମସ୍ତ ଜଗତର ସୃଷ୍ଟି କାର୍ଯ୍ୟ
ସମ୍ପୂର୍ଣ୍ଣ ହେଲା । ୨ ସପ୍ତମ ଦିବସରେ ଈଶ୍ୱର
ତାଙ୍କର କାର୍ଯ୍ୟ ଶେଷ କରି ବିଶ୍ରାମ ନେଲେ; ୩ ଏହି
ସପ୍ତମ ଦିବସକୁ ଆଶୀର୍ବାଦ କରି ଗୋଟିଏ ବିଶେଷ
ଦିନ ସ୍ୱରୂପେ ତାକୁ ପୃଥକ୍ କଲେ, କାରଣ ସେହି
ଦିବସରେ ସେ ସୃଷ୍ଟି ପ୍ରକ୍ରିୟା ଶେଷ କରି ବିଶ୍ରାମ
ନେଇଥିଲେ । ୪ ଏହା ହେଉଛି ଆକାଶ ମଣ୍ଡଳ ଓ
ପୃଥିବୀର ସୃଷ୍ଟି ବିବରଣୀ ।

## ଏଦନ ଉଦ୍ୟାନ

୫ ପ୍ରଭୁ ପରମେଶ୍ୱର ଜଗତକୁ ସୃଷ୍ଟି କରିବା
ସମୟରେ ପୃଥିବୀରେ କୌଣସି ପ୍ରକାର ଉଦ୍ଭିଦ ନ
ଥିଲା, କିମ୍ବା ବୀଜରୁ ଅଙ୍କୁର ଉଦ୍‌ଗମ ହେଉ ନ ଥିଲା,
କାରଣ ପ୍ରଭୁ ପୃଥିବୀ ଉପରେ ବୃଷ୍ଟିପାତ କରାଇ ନ
ଥିଲେ ଏବଂ କୃଷି କାର୍ଯ୍ୟ କରିବା ପାଇଁ କେହି ନ
ଥିଲେ । ୬ କିନ୍ତୁ ସେହି ସମୟରେ ପୃଥିବୀରୁ ଏକ
କୁହୁଡ଼ି ଉତ୍‌ଥିତ ହୋଇ ମାଟିକୁ ଆର୍ଦ୍ର କରୁଥିଲା ।

୭ ତା'ପରେ ପ୍ରଭୁ ପରମେଶ୍ୱର ଭୂମିରୁ କିଛି ମାଟି
ନେଇ ସେଥିରୁ ଏକ ମନୁଷ୍ୟର ଆକାର ଗଠନ କଲେ
ଓ ତା'ର ନାସିକାରେ ପ୍ରାଣବାୟୁ ଫୁଙ୍କି ତାକୁ
ସଞ୍ଜୀବିତ କଲେ ।

୮ ଏହାପରେ ପ୍ରଭୁ ପରମେଶ୍ୱର ପୂର୍ବ ଦିଗସ୍ଥ
ଏଦନରେ ଏକ ଉଦ୍ୟାନ , ପ୍ରସ୍ତୁତ କରି ସେ ସୃଷ୍ଟି
କରିଥିବା ମନୁଷ୍ୟକୁ ସେଠାରେ ଅବସ୍ଥାପିତ କଲେ ।
୯ ଉଦ୍ୟାନରେ ସେ ସବୁ ପ୍ରକାର ସୁନ୍ଦର ଉତ୍ତମ ଫଳ
ବୃକ୍ଷ ଉତ୍ପାଦନ କଲେ ଓ ଉଦ୍ୟାନର ମଧ୍ୟସ୍ଥଳରେ
'ଜୀବନ ଦାୟକ' ବୃକ୍ଷ ଏବଂ 'ସତ୍ ଅସତ୍ ଜ୍ଞାନ
ଦାୟକ' ବୃକ୍ଷ ସ୍ଥାପନ କଲେ ।

୧୦ ଏଦନରେ ଏକ ସ୍ରୋତ ପ୍ରବାହିତ ହୋଇ
ଉଦ୍ୟାନକୁ ଜଳସେଚିତ କଲା । ଏଦନର ପ୍ରାନ୍ତ
ଦେଶରେ ଏହି ସ୍ରୋତ ବିଭକ୍ତ ହୋଇ ଚାରିଗୋଟି
ନଦୀରେ ପରିଣତ ହେଲା । ୧୧ ସେଥିମଧ୍ୟରୁ
ପାଇସନ୍ ନାମକ ନଦୀ ହାବିଲା ଦେଶକୁ ବେଷ୍ଟନ
କରିଥିଲା ।

(୧୨ ଏହି ଦେଶରେ ବିଶୁଦ୍ଧ ସୁବର୍ଣ୍ଣ, ମଣିମୁକ୍ତା ଓ
ଦୁର୍ଲଭ ସୁଗନ୍ଧ ଦ୍ରବ୍ୟ ଉପଲବ୍ଧ ହୁଏ ।) ୧୩ ଗୀହୋନ
ନାମକ ଦ୍ୱିତୀୟ ନଦୀ କୂଶ ଦେଶକୁ ବେଷ୍ଟନ
କରିଥିଲା । ୧୪ ତୃତୀୟ ନଦୀ ଟାଇଗ୍ରିସ୍ ଆସିରିୟା
ଦେଶର ପୂର୍ବ ଦିଗରେ ପ୍ରବାହିତ ଓ ଚତୁର୍ଥଟିର ନାମ
ଇଉଫ୍ରେଟିସ୍ ।

୧୫ ଏହାପରେ ପ୍ରଭୁ ପରମେଶ୍ୱର ଉଦ୍ୟାନକୁ
ସୁରକ୍ଷା କରିବା ପାଇଁ ଓ ତହିଁରେ କୃଷିକର୍ମ କରିବାକୁ

୧:୨୬- ୧ମ କରିନ୍ଥୀ ୧୧:୭ । ୧:୨୭- ମାଥିଉ ୧୯:୪; ମାର୍କ ୧୦:୬ । ୧:୨୭-୨୮- ଆଦି ୫:୧-୨ । ୨:୨- ହିବ୍ରୁ
୪:୪-୧୦ । ୨:୨-୩- ଯାତ୍ରା ୨୦:୧୧ । ୨:୭- ୧ମ କରିନ୍ଥୀ ୧୫:୪୫ । ୨:୯- ପ୍ରକାଶିତ ୨:୭; ୨୨:୨,୧୪ ।

ସେଠାରେ ମନୁଷ୍ୟକୁ ନିଯୁକ୍ତ କଲେ, ୧୬,୧୭ ପୁଣି,
ତାକୁ କହିଲେ : "ଉଦ୍ୟାନର ଯେ କୌଣସି ବୃକ୍ଷର
ଫଳ ଖାଇପାର, କିନ୍ତୁ ସତ୍ ଅସତ୍ ଜ୍ଞାନ ଦାୟକ
ବୃକ୍ଷର ଫଳ ଖାଇବ ନାହିଁ । ଯଦି କେବେ ତାହା
ଖାଅ ସେହି ଦିନ ମରିବ ।"
୧୮ ତା'ପରେ ପ୍ରଭୁ ପରମେଶ୍ୱର କହିଲେ, "ମନୁଷ୍ୟ
ଏକାକୀ ରହିବା ଉତ୍ତମ ନୁହେଁ । ତାକୁ ସାହାଯ୍ୟ
କରିବା ପାଇଁ ଉପଯୁକ୍ତ ସହାୟକ ସୃଷ୍ଟି କରିବା ।"
୧୯ ଏହା କହି ପ୍ରଭୁ ଭୂମିରୁ ଅଳ୍ପ ମାଟି ନେଇ ସମସ୍ତ
ପ୍ରକାର ପଶୁପକ୍ଷୀ ଗଠନ କଲେ ଏବଂ ସେମାନଙ୍କ
ନାମକରଣ କରିବା ପାଇଁ* ଆଦମ ନିକଟକୁ ଆଣିଲେ ।
ଆଦମ ସେମାନଙ୍କ ମଧ୍ୟରୁ ଯାହାକୁ ଯେଉଁ ନାମରେ
ଡାକିଲେ, ତାହାର ସେହି ନାମ ହେଲା । ୨୦ ଏହିପରି
ଭାବରେ ଆଦମ ସମସ୍ତ ପଶୁପକ୍ଷୀର ନାମକରଣ
କଲେ; କିନ୍ତୁ ସେମାନଙ୍କ ମଧ୍ୟରୁ କେହି ହେଲେ
ତାଙ୍କର ଉପଯୁକ୍ତ ସହାୟକ ହୋଇ ପାରିଲା ନାହିଁ ।
୨୧ ତା'ପରେ ପ୍ରଭୁ ପରମେଶ୍ୱର ଆଦମଙ୍କୁ ଗଭୀର
ନିଦ୍ରାଭିଭୂତ କଲେ ଓ ସେ ଶୋଇଥିବା ବେଳେ ତା'
ଶରୀରରୁ ଖଣ୍ଡିଏ ପଞ୍ଜରହାଡ଼ ବାହାର କରି କ୍ଷତ ସ୍ଥାନ
ମାଂସରେ ପୂରଣ କରିଦେଲେ । ୨୨ ସେହି ପଞ୍ଜର
ହାଡ଼ରୁ ଗୋଟିଏ ସ୍ତ୍ରୀ ଗଠନ କରି ଆଦମ ନିକଟକୁ
ଆଣିଲେ । ୨୩ ତାକୁ ଦେଖି ଆଦମ କହିଲେ :

"ଶେଷରେ ମୋ' ପରି ଜଣକୁ ପାଇଲି—
ଏ ମୋର ଅସ୍ଥିର ଅସ୍ଥି ଓ ମୋର ମାଂସର
ମାଂସ
ଏହାର ନାମ ନାରୀ
କାରଣ ନର ଶରୀରରୁ ଏହାର ସୃଷ୍ଟି ।"

୨୪ ଏଥିପାଇଁ ମନୁଷ୍ୟ ପିତାମାତାଙ୍କୁ ଛାଡ଼ି ତା'
ସ୍ତ୍ରୀଠାରେ ଆସକ୍ତ ହୁଏ ଓ ସେମାନେ ଏକ ହୁଅନ୍ତି ।
୨୫ ଆଦମ ଓ ତାଙ୍କ ସ୍ତ୍ରୀ ଉଲଙ୍ଗ ଥିଲେ, କିନ୍ତୁ
ଏଥିରେ ସେମାନଙ୍କ ଲଜ୍ଜାବୋଧ ନ ଥିଲା ।

## ମନୁଷ୍ୟର ଆଜ୍ଞା ଲଙ୍ଘନ

୩ ଈଶ୍ୱର ସୃଷ୍ଟି କରିଥିବା ପ୍ରାଣୀମାନଙ୍କ ମଧ୍ୟରେ
ସର୍ପ ସମସ୍ତଙ୍କଠାରୁ ଧୂର୍ତ୍ତ ଥିଲା । ସର୍ପ ନାରୀକୁ
ପଚାରିଲା, "ଏ ଉଦ୍ୟାନର କୌଣସି ଗୋଟିଏ ବୃକ୍ଷର
ଫଳ ଖାଇବାକୁ ସତେ କ'ଣ ଈଶ୍ୱର ମନା
କରିଛନ୍ତି ?"
୨,୩ ନାରୀ ଉତ୍ତର ଦେଲେ, "ଉଦ୍ୟାନର ମଧ୍ୟ-
ସ୍ଥଳରେ ଥିବା ବୃକ୍ଷ ବ୍ୟତୀତ ଅନ୍ୟ ସମସ୍ତ ବୃକ୍ଷର
ଫଳ ଆମେ ଖାଇ ପାରିବୁ । ସେହି ବୃକ୍ଷର ଫଳ
ଖାଇବାକୁ କିମ୍ବା ସ୍ପର୍ଶ କରିବାକୁ ଈଶ୍ୱର ମନା
କରିଛନ୍ତି, କାରଣ ତାହା କଲେ ଆମେ ମରିବୁ ।"
୪ ସର୍ପ କହିଲା, "ମିଛ କଥା, ତୁମେ ମରିବ ନାହିଁ ।
୫ ଈଶ୍ୱର ସେପରି କହିଛନ୍ତି, କାରଣ ସେ ଜାଣନ୍ତି
ଯେ ତୁମ୍ଭେମାନେ ସେହି ଫଳ ଖାଇଲେ ଈଶ୍ୱରଙ୍କ
ପରି ହେବ, ଭଲ ମନ୍ଦ କଣ ତାହା ଜାଣି ପାରିବ ।"
୬ ନାରୀ ଦେଖିଲେ ବୃକ୍ଷଟି କେଡ଼େ ସୁନ୍ଦର,
ଭାବିଲେ ତା' ଫଳ ଖାଇବାକୁ କେଡ଼େ ଭଲ ନ
ଲାଗିବ । ଜ୍ଞାନୀ ହେବା ପ୍ରକୃତରେ ବାଞ୍ଛନୀୟ ।
ତେଣୁ ସେ ସେଥିରୁ ଫଳ ତୋଳି ଖାଇଲେ ଓ ସେଥିରୁ
କିଛି ସ୍ୱାମୀକୁ ଦେବାରୁ ସେ ମଧ୍ୟ ତାହା ଖାଇଲେ ।
୭ ଫଳ ଖାଇବା କ୍ଷଣି ସେମାନେ ଜ୍ଞାନ ପାଇ
ଜାଣିଲେ ଯେ, ସେମାନେ ଉଲଙ୍ଗ; ତେଣୁ ଡିମିରି ପତ୍ରକୁ
ଏକାଠି ସିଇଁ ଶରୀରକୁ ଆବୃତ କଲେ ।
୮ ସେ ଦିନ ସନ୍ଧ୍ୟା ସମୟରେ ପ୍ରଭୁ ପରମେଶ୍ୱର
ଉଦ୍ୟାନରେ ବିଚରଣ କରୁଥିବା ବେଳେ ତାଙ୍କର
ସ୍ୱର ଶୁଣି ସେମାନେ ବୃକ୍ଷମାନଙ୍କ ମଧ୍ୟରେ ଲୁଚିଲେ ।
୯ କିନ୍ତୁ ପ୍ରଭୁ ଆଦମଙ୍କୁ ଡାକି ପଚାରିଲେ, "ତୁମେ
କେଉଁଠାରେ ?"
୧୦ ଆଦମ କହିଲେ, "ଉଦ୍ୟାନରେ ତୁମର ସ୍ୱର
ଶୁଣି ମୁଁ ଭୟରେ ତୁମ ସମ୍ମୁଖରୁ ଲୁଚିଗଲି, କାରଣ
ମୁଁ ଉଲଙ୍ଗ ।"
୧୧ ପ୍ରଭୁ ପଚାରିଲେ, "ତୁମେ ଉଲଙ୍ଗ ବୋଲି କିଏ
କହିଲା ? ତୁମେ କ'ଣ ସେହି ନିଷିଦ୍ଧ ଫଳ ଖାଇଛ ?"
୧୨ ଆଦମ ଉତ୍ତର ଦେଲେ, "ମୋ' ସଙ୍ଗରେ
ରହିବା ପାଇଁ ଯେଉଁ ସ୍ତ୍ରୀକୁ ଦେଇଛ, ସେ ମୋତେ
ସେହି ଫଳ ଦେବାରୁ ତାହା ମୁଁ ଖାଇଲି ।"
୧୩ ପ୍ରଭୁ ପରମେଶ୍ୱର ନାରୀକୁ ପଚାରିଲେ,
"ତୁମେ କାହିଁକି ଏହା କଲ ?"
ନାରୀ କହିଲେ, "ତା' ଖାଇବାକୁ ସର୍ପ

* ମୂଳ ଭାଷାରେ, ଆଦମ ଶବ୍ଦର ଅର୍ଥ ମନୁଷ୍ୟ । ୨:୨୪– ମାଥିଉ ୧୯:୫; ମାର୍କ ୧୦:୭-୮; ୧ମ କରିନ୍ଥୀ ୬:୧୬; ଏଫିସୀ ୫:୩୧ । ୩:୧– ପ୍ରକାଶିତ ୧୨:୯; ୨୦:୨ । ୩:୧୩– ୨ୟ କରିନ୍ଥୀ ୧୧:୩; ୧ମ ତୀମଥି ୨:୧୪ ।

ମୋତେ ଭୁଲାଇଲା ।"

## ଈଶ୍ବରଙ୍କ ଦଣ୍ଡାଜ୍ଞା

୧୪ ତହୁଁ ପ୍ରଭୁ ପରମେଶ୍ଵର ସର୍ପକୁ କହିଲେ,
"ଏହି ଅପରାଧ ଲାଗି ସମସ୍ତ ଗୃହପାଳିତ ଓ ବନ୍ୟ-
ପଶୁମାନଙ୍କଠାରୁ ତୁ ଅଧିକ ଅଭିଶପ୍ତ ହେଲୁ,
ଆଜିଠାରୁ ତୁ ପେଟରେ ଘୁଷୁଡ଼ି ଚାଲିବୁ ଓ ଜୀବନ
ସାରା ଧୂଳି ଖାଇବୁ । ୧୫ ତୁ ଓ ନାରୀ ପରସ୍ପରକୁ
ଘୃଣା କରିବ; ତୋର ଓ ତାହାର ବଂଶଧର ମଧ୍ୟରେ
ସର୍ବଦା ଶତ୍ରୁତା ରହିବ । ସେମାନେ ତୋର ମସ୍ତକ
ଚୂର୍ଣ୍ଣ କରିବେ, ତୁ ସେମାନଙ୍କ ଗୋଇଠିକି ଦଂଶନ
କରିବୁ ।"

୧୬ ପ୍ରଭୁ ନାରୀକୁ କହିଲେ, "ତୁମ ଗର୍ଭଧାରଣର
କ୍ଲେଶ ବଢ଼ାଇ ଦେବି; ତୁମେ ଯନ୍ତ୍ରଣା ଭୋଗି ସନ୍ତାନ
ପ୍ରସବ କରିବ । ତଥାପି ତୁମେ ସ୍ଵାମୀ ସହବାସ
କାମନା କରିବ ଓ ତାହାର ବଶୀଭୂତ ହେବ ।"

୧୭ ଆଉ ସେ ଆଦମକୁ କହିଲେ, "ତୁମେ ତୁମ
ସ୍ତ୍ରୀ କଥା ଶୁଣି ମୋ' ଦ୍ଵାରା ନିଷିଦ୍ଧ ଫଳ ଖାଇଲ ।
ତୁମର ଏହି କାର୍ଯ୍ୟ ହେତୁ ଭୂମି ଅଭିଶପ୍ତ ହେଲା ।
ଭୂମିରୁ ତୁମ ପାଇଁ ଯଥେଷ୍ଟ ଖାଦ୍ୟ ଉତ୍ପାଦନ କରିବା
ନିମନ୍ତେ ତୁମକୁ ଯାବତ୍‌ଜୀବନ କଠିନ ପରିଶ୍ରମ
କରିବାକୁ ପଡ଼ିବ । ୧୮ ଭୂମିରେ କଣ୍ଟାବୁଦା ଓ
ବାଳୁଙ୍ଗା ମାଡ଼ିଯିବ ଓ ତୁମେ କ୍ଷେତର ଶାକ ଭୋଜନ
କରିବ । ୧୯ ତୁମେ ମାଟିରୁ ଜାତ ଓ ଯେ ପର୍ଯ୍ୟନ୍ତ
ମାଟିରେ ପୁନର୍ବାର ନ ମିଶିଛ ସେ ପର୍ଯ୍ୟନ୍ତ ମାଟିରୁ
କିଛି ଉତ୍ପାଦନ କରିବା ପାଇଁ ମୁଣ୍ଡରୁ ଝାଳ ବୁହାଇ
ତୁମକୁ ବହୁ ପରିଶ୍ରମ କରିବାକୁ ପଡ଼ିବ । ତୁମେ
ଯେଉଁ ମାଟିରୁ ଜାତ, ସେହି ମାଟିରେ ହିଁ ବିଲୀନ
ହେବ ।"

୨୦ ଆଦମ ନାରୀକୁ* ହବା ନାମ ଦେଲେ, କାରଣ
ସେ ହେଲେ ସମଗ୍ର ମାନବ ଜାତିର ଆଦି ମାତା ।
୨୧ ପ୍ରଭୁ ପରମେଶ୍ଵର ପଶୁ ଚର୍ମରେ ବସ୍ତ୍ର ତିଆରି
କରି ଆଦମ ଓ ତାଙ୍କ ସ୍ତ୍ରୀଙ୍କୁ ପିନ୍ଧାଇଲେ ।

## ଆଦମ ଓ ହବା ଉଦ୍ୟାନରୁ ବିତାଡ଼ିତ

୨୨ ତା'ପରେ ପ୍ରଭୁ ପରମେଶ୍ଵର କହିଲେ, "ସତ୍
ଅସତ୍ ଜ୍ଞାନ ଲାଭ କରି ମନୁଷ୍ୟ ଆମ ସମକକ୍ଷ
ହୋଇଛି, ସେ ଜୀବନଦାୟକ ବୃକ୍ଷର ଫଳ ଖାଇ
ଅମର ହେବା ଅନୁଚିତ ।" ୨୩ ତେଣୁ ପ୍ରଭୁ ପରମେଶ୍ଵର
ମନୁଷ୍ୟକୁ ଏଦନ ଉଦ୍ୟାନରୁ ବିତାଡ଼ିତ କଲେ ଓ ସେ
ଯେଉଁ ମୃତ୍ତିକାରୁ ନିର୍ମିତ ହୋଇଥିଲା, ସେଥିରେ କୃଷି
କାର୍ଯ୍ୟ କରିବା ପାଇଁ ତାକୁ ନିଯୁକ୍ତ କଲେ । ୨୪ ପୁଣି
ଉଦ୍ୟାନର ପୂର୍ବ ଦିଗରେ କିରୁବଗଣ ଓ ଏକ
ଘୂର୍ଣ୍ଣାୟମାନ ଜ୍ଵଳନ୍ତ ଖଡ୍‌ଗ ସ୍ଥାପନ କଲେ । ତେଣୁ
ଜୀବନ ଦାୟକ ବୃକ୍ଷ ନିକଟକୁ କେହି ଆସି ପାରିଲେ
ନାହିଁ ।

---

୩:୧୫ - ପ୍ରକାଶିତ ୧୨:୧୭ । ୩:୧୭-୧୮- ହିବ୍ରୁ ୬:୮
ମନୁଷ୍ୟ ଜାତିକୁ ବୁଝାଏ । ୩:୨୨- ପ୍ରକାଶିତ ୨୨:୧୪
ଅଲୌକିକ ପ୍ରାଣୀ; ଏମାନଙ୍କ ଶରୀର ଗଠନ ଅପ୍ରାକୃତିକ । ଏ
ହିବ୍ରୁ ଭାଷାରେ 'କୟିନ' ଶବ୍ଦର ଅର୍ଥ ଲାଭ କରିବା । ୪:୪

THE HOLY BIBLE
*Oriya - C.L.*
10H 0045/94-95/2M PL
ISBN 81-221-4241-9



Published by:
The Bible Society of India
206 Mahatma Gandhi Road
Bangalore 560 001

Printed in India by Photo offset process at
Swapna Printing works pvt. Ltd, Calcutta-9